# ଉତ୍ସର୍ଗପତ୍ର

ପରମ ପ୍ରେମାସ୍ପଦ ଅଭିନ୍ନହୃଦୟ ସୋଦରପ୍ରତିମ
ବାବୁ ଶ୍ରୀନୀଳକଣ୍ଠ ପୂଜାରୀ ବି: ଏ: ଚିରଜୀବେଷୁ ।

ଭାଇ ହେ !

ଏକଜନନୀ-ଜଠରୁ ଜନ୍ମି ଥିଲ ବୋଲି ତୁମ୍ଭେ କେବଳ ଏ ଶୋକମୟ ଘଟଣାର ସମ୍ପୂର୍ଣ୍ଣ ଦୁଃଖଭାଗୀ ନୁହ । ଦୂରରେ ରହିଲେ ସୁଦ୍ଧା ମୁଁ ତୁମ୍ଭର ଦଶାପନ୍ନ । ତୁମ୍ଭ ସୁଖ ଦୁଃଖ ଏବ ସମ୍ପଦ ବିପଦରେ ସାହାନୁଭୂତି କରିବାଲାଗି ଅନ୍ୟଜଣେ ନିରନ୍ତର ବିଦ୍ୟମାନ; ଏହା ଜାଣିଲେ, ଭାଇ, ତୁମ୍ଭର ଟିକଏ ସାନ୍ତ୍ୱନା ହେବ ନାହିଁ କି ? "ଗତସ୍ୟ ଶୋଚନା ନାସ୍ତି" । ଏ ମର୍ମାନ୍ତିକ ଆଘାତ କଦାପି ହୃଦୟରୁ ଲିଭିଯିବ ନାହିଁ ସତ୍ୟ; କିନ୍ତୁ ସଂସାର ତ ଅଛି । ସୁଯୋଗ୍ୟ ଜ୍ୟେଷ୍ଠଙ୍କର ତୁମ୍ଭଙ୍କୁ ଯୋଗ୍ୟତର କନିଷ୍ଠ ବୋଲି ଜାଣି ମନରେ ଏହି ଆଶା ପୋଷଣ କରିଅଛି ଯେ ସେ ସ୍ୱଦେଶ, ସ୍ୱଭାଷା, ଏବ ସ୍ୱଜାତି ପ୍ରତି ଅକୃତ୍ରିମ ଅନୁରାଗ ସହକାରେ ନାନା ବିଭାଗରେ ଯେଉଁ ସବୁ ସଦନୁଷ୍ଠାନ ଆରମ୍ଭ କରି ଅସମ୍ପୂର୍ଣ୍ଣ ରଖିଚାଲି ଗଲେ ତୁମ୍ଭେ ତାହା ପୂରଣ କରିବାଲାଗି ଯଥାସାଧ୍ୟ ଯତ୍ନଶୀଳ ହେବ ।

ଆଜି ଏହି ନିରାଶାନ୍ଧକାରର ଗଭୀର ଗର୍ଭରେ ତୁମ୍ଭେ ଷୀଣଦୀପଶିଖାତୁଲ୍ୟ ମତେ ଦେଖା ଯାଉଅଛ । ମଙ୍ଗଳମୟ ବିଧାତା ତୁମ୍ଭଙ୍କୁ ଚିରଜୀବୀ କରନ୍ତୁ; ଏହି ଆନ୍ତରିକ ଶୁଭାଶୀର୍ବାଦ ସହକାରେ ସୋଦରଶୋକତପ୍ତ ସାନ୍ତ୍ୱନାପୂର୍ବକ ଅଜି ଏ ଶୋକୋପହାର ତୁମ୍ଭ ହସ୍ତରେ ଅର୍ପଣ କଲି । ଇତି ।

ତୁମ୍ଭର
ଏକାନ୍ତ ଶୁଭାକାଂକ୍ଷୀ

# ଭୂମିକା ।

ସ୍ୱର୍ଗୀୟ ବାବୁ ଶ୍ରୀ ବୈକୁଣ୍ଠନାଥ ପୂଜାରୀ ମହୋଦୟ ସମ୍ବଲପୁରର ସୁପରିଚିତ ଅତି ଭଦ୍ରସନ୍ତାନ ଥିଲେ; କେବଳ ତାହା ବୋଲି ଯେ ମୁଁ ଶୋକରେ ବ୍ୟାକୁଳ ହୋଇ ଏ କତିପୟ ପଂକ୍ତି ଲେଖିଅଛି ଏହା ନୁହେ, ସେ ମୋର ସୋଦର ପ୍ରତିମ ପରମ ଆତ୍ମୀୟ ବନ୍ଧୁ ଥିଲେ; ତାଙ୍କର ଅକାଳ ମୃତ୍ୟୁରେ ସାଧାରଣ କ୍ଷତି ସଙ୍ଗେ ୨ ମୋର ବ୍ୟକ୍ତିଗତ କ୍ଷତି ଯଥେଷ୍ଟ ହୋଇଅଛି । ଯେଉଁମାନେ ପ୍ରକୃତ ପ୍ରେମ ପ୍ରଣୟର ବିରହ ଅନୁଭବ କରି ନାହାନ୍ତି, ବୋଧକରେ ମୋର କ୍ଷତି ସେମାନେ ସହଜରେ ଜାଣି ପାରିବେ ନାହିଁ ।

ସୁତରାଂ ଏହି କତିପୟ ପଂକ୍ତି ମୋ ହୃଦୟର ନୈସର୍ଗିକ ଉଚ୍ଛ୍ୱାସ ମାତ୍ର; ମୁଁ ବାସ୍ତବରେ କବି ନୁହେଁ କି ଏପରି ଘଟନାରେ କବିତ୍ୱ ଦେଖାଇବା ମୋର ପ୍ରୟାସ ନାହିଁ । ସାଧାରଣ ପାଠକମାନେ ମୋର ଏହି ଲେଖାକୁ ଏହି ଭାବରେ ଗ୍ରହଣ କଲେ କୃତକୃତ୍ୟ ହେବ ।

କହିବା ବାହୁଲ୍ୟ ଯେ ଇହ ଜନ୍ମରେ ମୁଁ ବୈକୁଣ୍ଠବାବୁଙ୍କୁ କଦାପି ପାସୋରି ପାରିବି ନାହିଁ । ଜୀବନର ନିଭୃତ କ୍ଷଣରେ କେବେ ନିର୍ଜନରେ ବସିବାର ସୁବିଧା ମିଳିଲେ ବୈକୁଣ୍ଠବାବୁଙ୍କ ଅକୃତ୍ରିମ ପ୍ରକୃତି ମୋ ଆଖିରେ ଅବିରଳ ନାଚିବ; ସେ ସମୟରେ ହଠାତ୍ କାନ୍ଦି ଉଠିବା ସ୍ୱାଭାବିକ ।

ଲେଖକ

# ବଧୂର ବିଳାପ

୧

କାନ୍ଦଇ ସମ୍ବଲପୁର, କାନ୍ଦେ ମହାନଦୀ ।
କାନ୍ଦୁଛନ୍ତି ନରନାରୀ ଶୋକେ ନିରବଧି ॥
ଛୁଟୁଛି ପ୍ରଚଣ୍ଡ ରବ, ଦିଶଇ ଅନ୍ଧାର ।
ଗାଉଛି ମଧୁରେ ପକ୍ଷୀ, କାନକୁ କୁଠାର ॥
ଚନ୍ଦନେ ସୁମନ ଗନ୍ଧ ଘ୍ରାଣକୁ ବିଷମ ।
ଶାରଦ ନିଶାରେ ହୁଏ ଦାବାନଳ ଭ୍ରମ ॥
ବହଇ ଶୀତଳ ବାୟୁ ଶୁଖାଏ ଶୋଣିତ ।
କେ କହି ପାରିବ କିପାଁ ଏହି ବିପରୀତ ॥
ବହୁ ଶ୍ରମେ ସାର ଦେଇ ବିଲକୁ ସଜାଡ଼ି ।
ହାଳ ସଙ୍ଗେ ରକ୍ତ ବିନ୍ଦୁ ଦେଇଣ ଅଜାଡ଼ି ॥
କରିଥିଲେ ବହୁ ଶସ୍ୟ କୃଷକ ସଞ୍ଚୟ ।
ବାନ୍ଧିଥିଲେ ଆଶା ସୁଖେ ଯାପିବ ସମୟ ॥
ଆସିଲା ଅକାଳ ବନ୍ୟା ପ୍ରବଳ ବେଗରେ ।
ଭାସିଲା କୃଷକ ଆଶା ନିରାଶା ସାଗରେ ॥

୨

ସମ୍ବଲପୁରର ମଥାମଣି ବଇକୁଣ୍ଠ ।
ଦେଖୁଁ ଦେଖୁଁ ଖୋଲିନେଲା କାଳ ଦେବ ଦୁଷ୍ଟ ॥

ପ୍ରିୟବନ୍ଧୋ ! ଆଉ ବାରେ ଏପୋଡ଼ା ନୟନ ।
କାହିଁ ୨ ଦେଖିବକି ତବ ସୁବଦନ ॥
ତବ ସ୍ନେହପୂର୍ଣ୍ଣ ବାଣୀ ପଡ଼ି ଏ କର୍ଣ୍ଣରେ ।
ଚିତ୍ତ ବିମୋହିବ ନାହିଁ କେବେ ଆଉ ଥରେ ।
କାଳର କୁଟିଳା ଗତି ଜାଣିଥିଲେ ଯେବେ ।
ସ୍ୱଦାସ୍ୟ ସକାଶେ ଭାଇ ତେଜି ଥାନ୍ତ ଜବେ ।
ଉଚ୍ଚ ଶିକ୍ଷା ଲଭିବାର ଏହି କିହେ ଫଳ ।
ଏଥି ପାଇଁ ଲୋଡ଼ା କିହେ ପ୍ରାଣେ ନବବଳ ?
ରାଜଦରବାରେ ଲଭିଥିଲ ଉଚ୍ଚାସନ ।
ନୋହିଥାନ୍ତା ଉଚ୍ଚାସନ ଥାଆନ୍ତା ଜୀବନ ॥
ଦେଶ ଭାଇଗଣେ କିଏ ଦେଖାଇବ ପଥ ।
କିଏ ଦେଶହିତ ଅର୍ଥେ ଚିନ୍ତିବ ସତତ ?
ଜାତୀୟ-ଉନ୍ନତି-ଯଜ୍ଞେ ଆହୂତି ଛଳରେ ।
ଅର୍ପିଲ କି ମାତୃ ଭୂମି ତା ଶ୍ରେୟସ୍କୁ କୁମରେ !

୩

ବସି ପାର୍ଶ୍ୱେ ବିଳପନ୍ତି ଅଧୀରା ଜନନୀ ।
ମୂର୍ଚ୍ଛନ୍ତି ଲୋଟକ ପିତା ଗୃହିଣୀ ଅବନୀ ॥
ତବ ସଙ୍ଗେ ପିଇଥିଲେ ଯେହୁ ଏକସ୍ତନ୍ୟ ।
କାନ୍ଦୁଛନ୍ତି ମୃତପ୍ରାଣ ତବ ଭାଇଗଣ ॥
ନ କାନ୍ଦ ଜନନି ! ଧୃତି ଧର ଗୋ ପଥର ।
ବିଧିର ବିଧାନ ଏହି, ନୁହ ଗୋ କାତର ॥

କାନ୍ଦିଲେ କି ପାଇବ ଗୋ ଆଉ ସେ କୁମର ।
ଆନ ପୁତ୍ରଗଣେ ଦେଖି ମନ ଥିର କର ॥
ନ ଶୁଣନ୍ତୁ ମୋର କଥା ତବ ଭାଇଗଣ ।
ଢାଳଥିଲେ ତବଠାରେ ଯେଣୁ ପ୍ରାଣ ମନ ॥
ଉଠ ବନ୍ଧୋ! ବାରେ ଭାଷି ମଧୁର ବଚନ ।
ପ୍ରାଣେ ତାଙ୍କ ଶାନ୍ତି-ବାରି କର ବରଷଣ ॥

୪

ଧନ୍ୟ ତାତ, ଧନ୍ୟ ବୈକୁଣ୍ଠ ଜନ୍ମଦାତା ।
ଏ ତନୟ, ତବସଙ୍ଗେ ବାଦକଲା ଧାତା !
ଭବେ ପିତା ହେବା ଇଚ୍ଛା ନ ଥାଏ କାହାର ।
ବୁଝିଥାନ୍ତି କେତେ ଜଣ କର୍ତ୍ତବ୍ୟ ପିତାର ?
ଚଳିଲେ ସକଳେ ତବ ପଥ ଅନୁସରି ।
ମାତୃଭୂମି ଦୁଃଖ ଶୀଘ୍ର ଯାନ୍ତା ଅପସରି ॥
ତବ ଯୋଗ୍ୟ ପୁତ୍ର ଗୁଣେ ତୁମ୍ଭେ ଯଶୋବାନ ।
ଶୋକ ପରିହରି ଆଜ ନୁହ ହେ ଅଜାଣ ॥
ଶୋକ ନାଶକରେ ବୁଦ୍ଧି, ବିଦ୍ୟା ନାଶଯାଏ ।
ଦମ୍ଭହରା ଶୋକେ ନର ପାଗଳ ପରାଏ ॥
ହେଉ ଜାଣିବାର ଜନ, ହେଉ କେତେ ଜ୍ଞାଣ ।
ଶୋକର ଭଉଁରି ଦୃଢେ ଅଲୋଡ଼େ ପରାଣ ॥
ଦେଉ ନାହିଁ ଉପଦେଶ କରୁଛି ବିନତି ।
ତବ ସୁତସମ ଜାଣି ଏ ଚପଳ ମତି ॥



ତବମନେ ମନ ଯେହ୍ନ ତବପ୍ରାଣେ ପ୍ରାଣ ।
ଅଶୋକ ବିଶାଳ ଅଙ୍ଗେ ମାଧବୀ ସମାନ ॥
ନିବଡେ ଜଡାଇଥିଲେ, ସେ ମନୋହାରିଣୀ ।
ଦଳପନ୍ତ୍ର ଯଥା ଯୂଥ-ପ୍ରଭ୍ରଷ୍ଟା ହରିଣୀ ॥
ଲିଭିଛି ସିନ୍ଦୂର ବିନ୍ଦୁ, ଶୁଖିଛି ବଦନ ।
ଫିଟିଛି କବରୀ, ଅଙ୍ଗୁ ଖସିଛି ବସନ ॥
ଥରହରେ କମ୍ପୁଅଛି ମୃଦୁ ଅପଘନ ।
ହାହାରନ୍ତି ବକ୍ଷସ୍ଥଳ କମ୍ପାଇ ଗଗନ ॥
ହା ମାତଃ ବସୁଧେ ! ଭୂତ-ଧାତ୍ରୀ ତବ ନାମ ।
ତବକୋଳେ ଏ ଦୁଃଖିନୀ ଲଭନ୍ତୁ ବିଶ୍ରାମ ॥
ଧୂଳି ଧୂସରିତ ଅଙ୍ଗ ତୋଳ ବକ୍ଷୁ ବର ।
କେବେ ଦେଖାଥିଲ କହେ ଏ ଶିତ ଭୂଧର !
ତୁମ୍ଭେ ପିତା, ତୁମ୍ଭେ ମାତା, ସୋଦରୀ, ସୋଦର ।
ତୁମ୍ଭେ ପରାଧ୍ୟ ଦେବ ତାହାଙ୍କ ଈଶ୍ୱର ॥
ତୁମ୍ଭେ ତାଙ୍କ ଧର୍ମ, କର୍ମ, ଯପ, ତପ, ଦାନ ।
ତବ ଭିନ୍ନ ଏ ଜଗତେ ନ ଜାଣନ୍ତି ଆନ ॥
କେମନ୍ତେ ବଞ୍ଚିବେ ସେହି କା ମୁଖ ଅନାଇଁ ।
ତବ ପ୍ରତିମୂର୍ତ୍ତି ରଖି ନ ଗଲ ତ ଭାଇ ॥
କଠୋଟ ବୈଧବ୍ୟ ବ୍ରତ ହାସ୍ୟରେ ଆଦର ।
ଛିଣ୍ଡି ଯାଉନାହିଁ ମୋର ଜିହ୍ୱାରେ ସତ୍ୱର !
କଠୋର ବୈଧବ୍ୟ ବ୍ରତ କେମନ୍ତେ ପାଳିବେ ।

ହୃଦୟ ବେଦନା ଖୋଲି କା ଆଗେ କହିବେ ॥

୬

ବନ୍ଧୁ, ହେ ! ଜଗତ ପ୍ରତି ସକଳ ମମତା ।
ତୁଟି ଯାଇଛି କି ତବ, କେ ଦେବ ବାରତା ॥
ଏ ମର୍ତ୍ତ୍ୟ ନିବଡ଼େ ବନ୍ଧା ସ୍ୱରଗ ସଙ୍ଗରେ ।
ତେବେ କିପାଁ ଏ ନିରାଶା ଜାଗେ ମୋ ପ୍ରାଣରେ !
ହେରୁଛି କୋମଳ ଦୃଷ୍ଟି ନ ଦେଖେ ନୟନ ।
ଭାଷୁଛି ପ୍ରବୋଧ ବାଣୀ ନଶୁଣେ ଶ୍ରବଣ ॥
ଅଛି ଜଡ଼ ମୋ ନୟନ, ଜଡ଼ ମୋ ଶ୍ରବଣ ।
ଜଡ଼ତା ଅଟଇ ସିନା ମୋହର କାରଣ ॥

୭

ଧନ୍ୟ ଗୋ ଭଗିନୀ ତୁମ୍ଭେ ଏମର୍ତ୍ତ୍ୟମଣ୍ଡଳେ ।
ଲଭିଥିଲ ଯୋଗ୍ୟପତି କେଉଁ ପୁଣ୍ୟଫଳେ !
ଭାଗ୍ୟର ଗରିମା ତବ କେତେ ନାରୀଙ୍କର ।
ହର ନେଇଥିବ ଦମ୍ଭ, ତାହାଙ୍କୁ ଗୋଚର ॥
କରିଥିଲ ପଣ୍ଡ, ଆଶା କରିବ ଯାପନ ।
ପ୍ରାଣନାଥ ସଙ୍ଗେ ଥିବାଯାଏ ଜୀବନ ॥
ମଣ୍ଡିଥାନ୍ତେ ପ୍ରାଣନାଥ ଶ୍ରୀକର କମଳେ ।
ଅନ୍ତ୍ୟେଷ୍ଟିର ଆଚରଣ ଅତି ଯତନରେ ॥
ହାୟରେ ବିଧାତା ହାୟ ତୋ ବିବେକପଣ ।
ସେ ଆଶା ପାଦପ ମୂଳୁ କଲୁରେ ଛେଦନ !
ଚିର ଉପବାସୀ ଯଥା ଲଭିଲେ ଭୋଜନ ।

ତାଙ୍କେ ନେଇ ଭୁଞ୍ଜେ ଭବେ ହୋଇ ଏକମନ ॥
ସୁଦୀର୍ଘ ବିଚ୍ଛେଦ ପରେ ହେବାରୁ ମିଳନ ।
ପୂର୍ବ ପୁଣ୍ୟଫଳ ଭୋଗି ହେଲ କି ତ୍ୱରିତ ?
ପୁଣ୍ୟର ଭଣ୍ଡାର ତବ ଅତି ଅଳ୍ପ ଯେଣୁ ।
ଶେଷ ହୋଇଗଲା ଅବା ଏତେ ଶୀଘ୍ର ତେଣୁ !

୮

ନା, ନା, ସରିନାହିଁ ସଖି ! ତୁମ୍ଭର ସୁକୃତ ।
ରଖିବାକୁ କଣ୍ଠରେ ବଳାଇଣ ମତି ॥
ଦାବ୍ୟରୂପେ ପ୍ରାଣନାଥ ତବ ନିକଟରେ !
ରହିଛନ୍ତି, ଦେଖିବ ଗୋ ସଖୀତ୍ୱ ବନ୍ଧରେ ॥
କାନ୍ଦନା ଭଗିନି ! ମୋର କାନ୍ଦନା ଗୋ ଆଉ ।
କ୍ରନ୍ଦନ ଶୁଣିଲେ ହୃଦ କରେ ଦାଉ ଦାଉ ॥
ମୋ ବସନେ ପୋଛି ଦେଇ ତବ ଅଶ୍ରୁଜଳ ।
ଦଅ ଅନୁମତି, ମୋର ହୃଦୟ ବିକଳ ॥
ଏକପ୍ରାଣେ, ଏକଧ୍ୟାନେ, ଏକମନେ, ସତି !
ପ୍ରାଣନାଥ ପଦତଳେ କର ଗୋ ଭକତି ॥
ସର୍ବଦୁଃଖହାରୀ ହରି ଅଭୟ ଚରଣେ ।
ପତିଭକ୍ତି ଭିକ୍ଷା କର ଅକପଟେ ମନେ ॥
ଯୁଗେ ଯୁଗେ ଲଭୁଥିବ ପ୍ରାଣନାଥ ପଦ ।
ଆଦରିବେ ପ୍ରାଣନାଥ ମନେ ବହୁ ସୁଖ ॥

୯

ନାଶିବ ଏ ଦେହ ତବ ମାଟିରେ ମିଶିଛି ।

ବମା ଚେଷ୍ଟ ପକ୍ଷିବର ଉଡ଼ଣ ଯଉଛନ୍ତି ॥
ମିଶିଅଛୁ ଅମ୍ଭା କନ୍ତୁ ବଶଅମ୍ଭା ସଙ୍ଗେ ।
ମିଶେ ଯଥା ମନ୍ଦାକଦୀ ଅନନ୍ତ ତରଙ୍ଗେ ॥
ପ୍ରତୀଚୀ ଲଲାଟ ଦେଶେ ସିନ୍ଦୂର ପଲ୍ଲବେ ।
ଅସ୍ତଗାମୀ ଦିନମଣି ଯେବେ ଶୋଭାପାଏ ॥
ନାନାଦେଶୁଁ ପକ୍ଷିଗଣ ଆସି କଳରବେ ।
ଏକଇ ବୃକ୍ଷରେ ନିଶା ଯାପନ୍ତି ହରଷେ ॥
ପ୍ରାତେ ଚାଲିଯାନ୍ତି ଯେଝା ଦିଗ ଅନୁସରି ।
ସଂସାରର ଚେଷ୍ଟା ଚେଷ୍ଟି ସିନା ଏହିପରି ॥
ଦେଖା ମୋର ତବ ସଙ୍ଗେ ଏ ମର୍ତ୍ତ୍ୟଭୁବନେ ।
ହେଉ ନାହିଁ ତେଣୁ ଥିବା ଯାଏ ଏ ଜୀବନେ ॥
ବନ୍ଧୁ ହେ ! କରିଛୁ ଆଶା ମୋର ହୃଦୟରେ ।
ସ୍ୱରଗ ସୁଖରେ ମାଇ ନ ଭୁଲିବ ମୋତେ ॥
ସୁଖେ ସେବୁଥାଅ ବନ୍ଧୁ ଅଭୟ ଚରଣ ।
ଢାଳୁଥାଅ ଆମ୍ଭ ଶିରେ ଆଶିଷ ବଚନ ॥
ମାଗୁଛି ମେଲାଣି ବନ୍ଧୋ ! ଦିଅ ହେ ହରଷେ ।
ଜାଗିଥାଉ ତବ ସ୍ମୃତି ଏ ମୋର ମାନସେ ॥
ଏତିକି ମାଗୁଣି ବନ୍ଧୋ ! ବେଳେ ୬ ଆସି ।
ଯାଉଥିବ ନନ୍ଦଧାମେ ଅଧମେ ଆଶ୍ୱାସି ॥

୧୦

ସୁଖପରେ ଆସେ ଦୁଃଖ ଦୁଃଖ ପରେ ସୁଖ ।
ତେବେ କିପାଁ ଅଜ୍ଞନର ହୁଅଇ ବିମୁଖ !

କରୁଣାସାଗର ହରେ ! ଦୁଃଖ ବିନାଶନ ।
ସେ କରୁଣା ଲେଶ ପାଇଁ ନୁହେ କି ଭାଜନ ॥
ମୋ ଜନମ ଭୂମି ! ଅହା ସେ ଚିରଦୁଃଖିନୀ ।
କେଉଁ ପାପ ଫଳେ ? ପାପ ଛେଦ ଚକ୍ରପାଣି ॥
ଦେଲ ଯାହା ନେଲ ତାହା ଏଥକୁ କିପାଇଁ ।
ମହାଦାନୀ ବୋଲାଉଛ ଆହେ ଭାବଗ୍ରାହୀ ॥
ଦୁଃଖଅନ୍ତରୂପେ ସୁଖ ମିଳୁ ଥାନ୍ତା ଯେବେ ।
ତବ ଦାତାପଣ ସିନା ଶୋଭା ପାନ୍ତା ତେବେ ॥
ହରି ହେ ! ଅପାର ତବ ମହିମା ବାରିଧି ।
ବୁଝିବାକୁ ସେ ମହିମା ନାହିଁ ମୋର ଶକ୍ତି ॥
କି ରଖିଛି ନର ଭାଗ୍ୟେ ଭବିଷ୍ୟ ଗୋଁସାଇ ।
ଜାଣି ପାରୁଥାନ୍ତା ଯେବେ ଦୁଃଖ କାହିଁ ପାଇଁ ॥
ନରର ଅଭାବ ନିଜେ ଜାଣି ସେ ନ ପାରେ ।
ଜାଣ ତୁମ୍ଭେ ମହାବାହୋ ! କର କୃପା ତାରେ ॥
ଦୁର୍ବଳ ମାନବ ମୂଢ଼ ଦୁର୍ବଳ ପରାଣ ।
ତବ ପଦେ ଚିରଦୋଷୀ, କ୍ଷମ ଆର୍ତ୍ତତ୍ରାଣ ॥
ହରି ହେ ! ଏତିକି ଭିକ୍ଷା ଅଭୟ ପ୍ରସୂରେ ।
କତର ଅଶ୍ରୁସ୍ନ ଦବ୍ୟ ମୋର ବନ୍ଧୁବରେ ॥
ତାପିତ ପରାଣ ମମ ବନ୍ଧୁ ପରିବାର ।
ତବ ଶାନ୍ତିସୁଧା-ଝରି ଶିରେ ତାଙ୍କ ଢାଳ ॥

କଟକ
ତା ୨୨।୧୦।୧୯୦୩

ଶ୍ରୀ ବାଲୁକେଶ୍ୱର ମିଶ୍ର ବି, ଏ
ସମ୍ବଲପୁର ।